ISSN: 2456-9194, Vol. I, Issue. IV, March 2018


# ପ୍ରତ୍ୟୟ

**(Journal of Odia Language, Culture and Science)**

JournalHomepage:http://cphfs.in/research.php




# ଓଡ଼ିଆ ଲୋକନାଟକର ବୈଶିଷ୍ଟ୍ୟ ଓ ବୈଚିତ୍ର୍ୟ


**ଓଡ଼ିଆ ଲୋକନାଟକର ବୈଶିଷ୍ଟ୍ୟ ଓ ବୈଚିତ୍ର୍ୟ**

ପ୍ରଫେସର ନୀଳାଦ୍ରି ଭୂଷଣ ହରିଚନ୍ଦନ

ଅବସରପ୍ରାପ୍ତ ପ୍ରଫେସର

ଓଡ଼ିଆ ବିଭାଗ, ବିଶ୍ୱଭାରତୀ, ଶାନ୍ତିନିକେତନ

କେ-୩, କଳିଙ୍ଗ ବିହାର, ଭୁବନେଶ୍ୱର – ୨ ୯

ମୋବାଇଲ : ୭୩୭୭୩୩୯ ୯୩୭


କୁହାଯାଇଛି ଯେ ଗୋଟିଏ ଦେଶର ସଂସ୍କୃତି ତା'ର ଲୋକନାଟକରୁ ଜଣାପଡ଼େ । "A nation is known by its theatre and a culture is known by its folk-theatre". ଏହି ବିଚାରରେ ଓଡ଼ିଆ ସଂସ୍କୃତିର ପ୍ରାଚୀନତା ତାର ଲୋକନାଟକର ସ୍ଥିତିରୁ ସ୍ପଷ୍ଟ ହୁଏ । ଦିଗ୍‌ବିଜୟୀ ସମ୍ରାଟ ଖାରବେଳଙ୍କ ରାଜତ୍ୱ କାଳ (ଖ୍ରୀ.ପୂ. ପ୍ରଥମ ଶତାବ୍ଦୀ)ର ତୃତୀୟ ବର୍ଷରେ ତାଙ୍କଦ୍ୱାରା ଆୟୋଜିତ ବିଜ ଉତ୍ସବର ବିବରଣୀ ହାତୀଗୁମ୍ଫା ଶିଳାଲେଖରେ ଖୋଦିତ ହୋଇଛି ।

ଏହାର ସଂସ୍କୃତ ଅନୁବାଦ ଏହିପରି - "ତୃତୀୟ ପୂର୍ବେ ବର୍ଷ ଗନ୍ଧର୍ବ ବିଦ୍ୟାବୁଦ୍ଧଃ ଦର୍ପନୃତ୍ୟଗୀତବାଦିତ୍ର ସନ୍ଦର୍ଶନେରୁ ଭବଃ ସମାଜ କାରଣାଭିନ୍ନ କ୍ରୀଡ଼ାପୟତି ନଗରୀମ୍।" (ରାଜତ୍ୱର ତୃତୀୟ ବର୍ଷରେ ଗନ୍ଧର୍ବବେଦ ନିପୁଣ ଖାରବେଳ ପଶୁ ଯୁଦ୍ଧ, ନୃତ୍ୟ, ଗୀତ, ବାଦିତ୍ର, ନାଟକ ପ୍ରଭୃତି ପ୍ରଦର୍ଶନ କରାଇ ନଗରୀକୁ ଆମୋଦିତ କରିଥିଲେ ।) ଶୋଭାଯାତ୍ରାମୂଳକ ଅନୁଷ୍ଠାନରେ ଲୋକନାଟକ ହିଁ ପ୍ରଦର୍ଶିତ ହୋଇଥାଏ । ତେଣୁ, ଅନୁମାନ କରାଯାଇପାରେ ଯେ ଏହି ଶୋଭାଯାତ୍ରାରେ ପ୍ରଦର୍ଶିତ 'ସମାଜ' ହେଉଛି ଲୋକନାଟ୍ୟ । ଏବେ ମଧ୍ୟ ଗ୍ରାମାଞ୍ଚଳରେ ଲୋକନାଟ୍ୟ ଅର୍ଥରେ 'ସମାଜ' ଶବ୍ଦଟି ପ୍ରଚଳିତ । ଶିଳାଲେଖରୁ ପ୍ରମାଣିତ ହୁଏ ଯେ ଖ୍ରୀଷ୍ଟପୂର୍ବ ସମୟରେ ମଧ୍ୟ ଓଡ଼ିଆ ଲୋକନାଟ୍ୟର ସ୍ଥିତି ରହିଥିଲା । ପଞ୍ଚଦଶ ଶତାବ୍ଦୀରେ ଲିଖିତ ମହାକବି ସାରଳାଦାସଙ୍କ 'ମହାଭାରତ'ରେ ବିରାଟ ରାଜାକୁ ଶୋଭାଯାତ୍ରାମୂଳକ ବସନ୍ତ ଉତ୍ସବ ପାଳନ କରିବାକୁ ଯୁଧିଷ୍ଠିରଙ୍କ ପରାମର୍ଶ ପ୍ରସଙ୍ଗରେ ଉଲ୍ଲେଖ ଅଛି – "ଭୋ ବିରାଟ ଯେବଣ ରାଜ୍ୟରେ ସମାଜ ରଂସସଭା ନାହିଁ

ଯେବଣ ରାଜ୍ୟରେ ଯାତ୍ରା ଉତ୍ସବ ନ ହୋଅଇ ।
ଯେବଣ ରାଜ୍ୟରେ ନ ଥାଇ ଯାଗଯଗ୍ୟଂ
ଜାଣ ସେ ରାଜ୍ୟ ଅଟଇ ଅସୁରେଶ ଭୋଗ୍ୟ ।" (ବିରାଟପର୍ବ)

ଲୋକନାଟ୍ୟ ଅର୍ଥରେ ସମାଜ ଶବ୍ଦର ବ୍ୟବହାରୁ ପଞ୍ଚଦଶ ଶତାବ୍ଦୀରେ ଲୋକନାଟକର ସ୍ଥିତି ସୂଚିତ ହେଉଛି । ଏହି ଦୁଇଟି ଉଦାହରଣରୁ ଓଡ଼ିଆ ଲୋକନାଟକ ପରଂପରାର ପ୍ରାଚୀନତା ପ୍ରତିପାଦିତ ହୋଇପାରିବ ।

ଶାସ୍ତ୍ରାନୁସୃତ ନାଟକ ଏବଂ ଲୋକନାଟକ ଯୁଗ ଯୁଗ ଧରି ସମାନ୍ତରାଳ ଗତିରେ ଚାଲିଆସିଛି । ଭରତଙ୍କ 'ନାଟ୍ୟଶାସ୍ତ୍ର' (ଆନୁମାନିକ ଖ୍ରୀ.ପୂ. ଚତୁର୍ଥ ଶତାବ୍ଦୀ) ପ୍ରଣୟନ କାଳରେ ମଧ୍ୟ ଲୋକନାଟ୍ୟର ସ୍ଥିତି ଅନୁମେୟ । ନାଟ୍ୟଶାସ୍ତ୍ରରେ ନାଟକକୁ ସାଧାରଣ ଲୋକଙ୍କ ଉପଯୋଗୀ ପଞ୍ଚମବେଦ ବା ସାର୍ବବର୍ଣ୍ଣିକା (ସବୁ ଜାତିର ଲୋକଙ୍କ ଦ୍ୱାରା ଉପଭୋଗ୍ୟ) କୁହାନଥିଲା । 'ନାଟ୍ୟଶାସ୍ତ୍ର'ରେ ରଙ୍ଗମଞ୍ଚ ନିର୍ମାଣ ସଂପର୍କରେ ନିର୍ଦ୍ଦେଶ ଦିଆଯାଇଛି ଯେ ପ୍ରେକ୍ଷାଳୟରେ ଶ୍ୱେତସ୍ତମ୍ଭ, ଲୋହିତ ସ୍ତମ୍ଭ, ପୀତସ୍ତମ୍ଭ ଓ ନୀଳସ୍ତମ୍ଭ ସ୍ଥାପନ କରାଯିବ, ଯେଉଁଠାରେ କ୍ରମାନ୍ୱୟରେ ଜାତିଗତ ଶ୍ରେଣୀ ଅନୁସାରେ ପ୍ରଥମେ ଶ୍ୱେତସ୍ତମ୍ଭ ଚିହ୍ନିତ ସ୍ଥାନରେ ବ୍ରାହ୍ମଣ, ତାପରେ ଲୋହିତ ସ୍ତମ୍ଭ ଚିହ୍ନିତ ସ୍ଥାନରେ କ୍ଷତ୍ରିୟ, ତାପରେ ପୀତସ୍ତମ୍ଭ ଚିହ୍ନିତ ସ୍ଥାନରେ ବୈଶ୍ୟ ଏବଂ ଶେଷରେ ନୀଳସ୍ତମ୍ଭ ଚିହ୍ନିତ ସ୍ଥାନରେ ଶୂଦ୍ରମାନେ ବସିବେ । ସବୁ ଜାତିର ଲୋକଙ୍କ ବସିବା ସ୍ଥାନରେ ଜାତିବିଭାଗ ରହିଥିବାରୁ ଏହା ପ୍ରକୃତପକ୍ଷେ ସାର୍ବବର୍ଣ୍ଣିକା ନୁହେଁ । କଳା ଉପଭୋଗ କ୍ଷେତ୍ରରେ ଏପରି ସାମାଜିକ ବୈଷମ୍ୟ ସୃଷ୍ଟି ହେତୁ ନାଟକକୁ ସାର୍ବଜନିକ କଳା ବା ସାଧାରଣ ଲୋକଙ୍କ ଉପଭୋଗ୍ୟ

କଳା ବୋଲି କୁହାଯାଇନପାରେ । ଲୋକନାଟକ କିନ୍ତୁ ଏହି ବ୍ୟବସ୍ଥାର ବିରୋଧୀ ।

ସମସ୍ତେ ଏକତ୍ର ଏକ ସମତଳରେ ବସିବାର ବ୍ୟବସ୍ଥା କେବଳ ଲୋକନାଟକରେ ରହିଛି । ଏହା ପ୍ରକୃତରେ ସାମାଜିକ ସମଭାବାପନ୍ନ ସର୍ବଜନ ଉପଭୋଗ୍ୟ ଲୋକଧର୍ମୀ ନାଟକ । ଲୋକନାଟକ ହେଉଛି ଗ୍ରାମୀଣ ବା ଲୋକାୟତ ସ୍ତରର ନାଟକ । ଏହା ଗ୍ରାମବାସୀମାନଙ୍କ ଉପଭୋଗ ଲାଗି ଉଦ୍ଦିଷ୍ଟ, ସେ ମାନବ ଦ୍ୱାରା ପ୍ରଯୋଜିତ। ଏହାର ଅଭିନେତୃବର୍ଗ, ଲେଖକ, ନିର୍ଦ୍ଦେଶକ, ବାଦ୍ୟକାର, ସଂଗୀତ ଶିଳ୍ପୀ ଓ ନୃତ୍ୟଶିଳ୍ପୀ ସମସ୍ତେ ଗ୍ରାମୀଣ ସ୍ତରର ।

ଓଡ଼ିଶା ଏକ ଲୋକନାଟ୍ୟ ସମୃଦ୍ଧ ରାଜ୍ୟ । ଲୀଳା, ନାଟ, ସୁଆଙ୍ଗ, ଯାତ୍ରା ନାମରେ ବହୁବିଧ ଲୋକନାଟକ ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ଆଜି ପର୍ଯ୍ୟନ୍ତ ଗ୍ରାମରେ ବା ଲୋକାୟତ ପରିବେଶରେ ଅଭିନୀତ ହୋଇଆସୁଛୁ । ସିନେମା, ଟେଲିଭିଜନ, ଆଧୁନିକ ଅପେରା ବା ଗଣନାଟ୍ୟର ବ୍ୟାପକ ପ୍ରଭାବ ଲୋକନାଟକର ସ୍ଥିତିକୁ ବିପନ୍ନ କରୁଥିଲେ ମଧ୍ୟ ଏହା ତଥାପି ଏହା ଗ୍ରାମାଞ୍ଚଳରେ ତିଷ୍ଠି ରହିଛି । ଅବକ୍ଷୟଗ୍ରସ୍ତ ହେଲେ ମଧ୍ୟ ଏହାର ସତ୍ତା ବିଲୁପ୍ତ ହୋଇନାହିଁ । ପରଂପରା ପ୍ରତି ରକ୍ତଗତ ମୋ ଯୋଗୁଁ ଏହା ସମ୍ଭବ ହୋଇଛି ।

ଲୋକନାଟକ ହେଉଛି ନୃତ୍ୟ, ଗୀତ, ବାଦ୍ୟ ସମନ୍ୱିତ ନାଟ୍ୟାଭିନୟ । ଏହାର ଉଦାହରଣଅଭିନୟରେ ନୃତ୍ୟରେ ଉଦ୍ଦାମତା - , ବାଦ୍ୟନାଦରେ ପ୍ରଚଣ୍ଡତା ଏବଂ ସଂଳାପ ଉଚ୍ଚାରଣ ଓ ଗୀତଗାନରେ ଉଦ୍ଦାମତା ରହିଥାଏ । ଆମ ଲୋକନାଟ୍ୟରେ ପ୍ରଯୋଜିତ ଅଧିକାଂଶ ନୃତ୍ୟ ଓଡ଼ିଶାର ପାରଂପରିକ ସାମରିକ ନୃତ୍ୟଦ୍ୱାରା ପ୍ରଭାବିତ । ବାଦ୍ୟ ଭାବେ ଢୋଲ, ନିଶାଣ, ଧୁମ୍ପା, ମାଦଳ, ନାଗରା, ଝାଞ୍ଜ, ଗିନି, ମହୁରୀ ପ୍ରଭୃତି ବ୍ୟବହୃତ ହୁଏ । ଲୋକନାଟକ ମୁକ୍ତମଞ୍ଚ ଅଭିନେୟ ନାଟକ । ଏକ ସମତଳରେ ଅଭିନୟ ସ୍ଥାନ ଓ ଦର୍ଶକମାନଙ୍କ ବସିବା ସ୍ଥାନ । ସ୍ଥଳବିଶେଷରେ ଉଚ୍ଚ କରି ମଞ୍ଚକୁ ନିର୍ମାଣ କରାଯାଇଥାଏ । ଏହାର ଚାରିଦିଗ ଖୋଲା; ଉପରେ କେଉଁଠି ଛାଦନ ଥାଏ, ପୁଣି କେଉଁଠି ଖୋଲା ଆକାଶ । ଅଭିନୟ ସ୍ଥଳ ବା ମଞ୍ଚକୁ ଚତୁର୍ଦ୍ଦିଗରୁ ଘେରି ଦର୍ଶକମାନେ ବସନ୍ତି । ଏଠାରେ ସମସ୍ତେ ସମାନ, କାହାପାଇଁ ସ୍ୱତନ୍ତ୍ର ଆସନର ବ୍ୟବସ୍ଥା କରାଯାଏ ନାହିଁ। ମୁକ୍ତ ମଞ୍ଚ ସର୍ବତ୍ର ଏକ ସମତଳ ନ ହେଲେ ମଧ୍ୟ ଦର୍ଶକ ମଞ୍ଚଠାରୁ ଦୂରତ୍ୱ ଅନୁଭବ କରେ ନାହିଁ । ଲୋକନାଟ୍ୟର ମଧ୍ୟ ପ୍ରାୟତଃ ଗ୍ରାମର ଗୋଟିଏ ପାଶ୍ୱର୍ରେ ଥିବା ଖୋଲାପଡ଼ିଆ, ମନ୍ଦିର ପ୍ରାଙ୍ଗଣ କିମ୍ବା ଗାଁଦାଣ୍ଡରେ ପ୍ରସ୍ତୁତ କରାଯାଏ। କେତେକ ସ୍ଥାନରେ ଅଭିନୟ ସ୍ଥଳରେ ଚାରିଧାମରେ ଖୁଣ୍ଟପୋତି ତାଳପତ୍ରର ଛାମୁଣ୍ଡିଆ କରାଯାଇଥାଏ। ଗ୍ରାମୀଣ ନାଟକର ପ୍ରଯୋଜନା ଓ ପ୍ରଦର୍ଶନ ସାଧାରଣ ଲୋକଙ୍କ ଭିତରେ ସାମାଜିକ ସମଭାବ ସୃଷ୍ଟି କରେ ।

ରାମଲୀଳା, କୃଷ୍ଣଲୀଳା, ଭରତଲୀଳା, ସୁଆଙ୍ଗ, ଦଣ୍ଡନାଟ, ଛଉନାଟ, ପ୍ରହ୍ଲାଦ ନାଟ, ଦଧିନାଟ, ବଣ୍ଠିନାଟ, ଦେଶିଆ ନାଟ, ସାହିଯାତ୍ରା, ଧନୁଯାତ୍ରା ପ୍ରଭୃତି ପ୍ରାୟ ସମସ୍ତ ଲୋକନାଟକ ଧର୍ମଭିତ୍ତିକ ଓ ସେଗୁଡ଼ିକରେ କଥାବସ୍ତୁ ପୌରାଣିକ ଉପାଖ୍ୟାନରୁ ଗୃହୀତ । ତେଣୁ ଲୋକନାଟକର ଚରିତ୍ର ଦେବଦେବୀ ବା ରାଜାରାଣୀ, ରାଜକୁମାର ରାଜକୁମାରୀ ଚରିତ୍ର ଭାବେ ସାଧାରଣ ଲୋକଙ୍କ ଉପସ୍ଥିତି ପ୍ରାୟ ନାହିଁ । କେବଳ ଦଣ୍ଡନାଟରେ ସମାଜର ନିମ୍ନବର୍ଗର ଚରିତ୍ରମାନଙ୍କ ପ୍ରାଧାନ୍ୟ ରହିଛି । ଗଦ୍ୟ ବଚନିକା ଓ ପଦ୍ୟ ବଚନିକା ଉଭୟ ପ୍ରକାରର ସଂଳାପ ପାତ୍ରପାତ୍ରୀଙ୍କ ମୁଖରେ ଦିଆଯାଏ । ସମସ୍ତ ଚରିତ୍ର ପ୍ରତ୍ୟକ୍ଷ ଭାବେ ଗୀତ ଗାଆନ୍ତି ଏବଂ କେତେକ ଚରିତ୍ର ନୃତ୍ୟ କରିଥାନ୍ତି । ସମ୍ଭ୍ରାନ୍ତ ଚରିତ୍ରଗୁଡ଼ିକ ପଦ୍ୟ ବଚନିକା ଗାନ କରିବା ସମୟରେ ଗୋଟିଏ ପାଶ୍ୱରୁ ଅନ୍ୟ ପାଶ୍ୱର୍ ପର୍ଯ୍ୟନ୍ତ ଏକ ନାଟକୀୟ ଶୈଳୀରେ ପଦାଚାରଣ କରି ପରସ୍ପର ସ୍ଥାନ ପରିବର୍ତ୍ତନ କରିଥାନ୍ତି । ନୃତ୍ୟଗୀତ ସଂଳାପ ଓ ପଦଚାରଣ ମଧ୍ୟରେ ମଞ୍ଚ ଗତିଶୀଳ ହୋଇରହେ ।

ଲୋକନାଟକରେ ଏକ ପ୍ରଧାନ ଲକ୍ଷଣ ଆତିଶଯ୍ୟ ଓ ଅତିରଂଜନ। ଦର୍ଶକମାନେ ମଞ୍ଚ ପାଖରୁ ଆରମ୍ଭ କରି ବହୁ ଦୂର ପର୍ଯ୍ୟନ୍ତ ଚାରିଦିଗକୁ ଘେରି ବସୁଥିବାରୁ ଅଭିନେତୃବର୍ଗଙ୍କୁ ଚତୁର୍ଦ୍ଦଗକୁ ଘୁରି ଘୁରି ଉଚ୍ଚକଣ୍ଠରେ ସଂଳାପ ଉଚ୍ଚାରଣ କରିଥାନ୍ତି ଏବଂ ଆବଶ୍ୟକସ୍ଥଳେ ଗାନ କରିଥାନ୍ତି । ସଂଳାପ ଓ ଗାନରେ ଯେପରି ଉଦାରତା ଥାଏ, ମୁଖଭଂଗୀ, ହସ୍ତ ସଂଚାଳନ ଏବଂ ପଦକ୍ଷେପରେ ସେହିପରି ଉଦ୍ଦାମତା ରହିଥାଏ ।

ଆତ୍ମ ପରିଚୟାତ୍ମକ ପ୍ରବେଶ ଗୀତ ଓଡ଼ିଆ ଲୋକନାଟକର ଏକ ବିଶେଷତ୍ୱ । ଅଧିକାଂଶ ଲୋକନାଟକରେ ଚରିତ୍ରମାନେ ଆତ୍ମ ପରିଚୟମୂଳକ ଗୀତ ଗାଇ ଗାଇ ମଞ୍ଚ ପ୍ରବେଶ କରନ୍ତି । ଦଣ୍ଡନାଟରେ ପୁଷ୍ପପଥରୁ ଗୀତ ଗାଇ ଗାଇ ମଞ୍ଚ ଉପରକୁ ଆସନ୍ତି ଶିବପାର୍ବତୀ–

"ଦେଖ କୈଳାସୁ ବିଜେ ଉମାମହେଶ
ଡ୍ରିମି ଡ୍ରିମି ଡ୍ରିମି ଡ୍ରିମି ଡମ୍ବରୁ ଘୋଷ ।!

ସେହିପରି ଚଢ଼େୟା ମଞ୍ଚ ପ୍ରବେଶ କରି ଗାଏ –

"କି ରଂଗେ ଆସୁଛି ଦେଖ ଚଢ଼େଇଆ ବୀର ହେ
ଖଂଜାକାଠି ପାଶଗୋଟି ଧରିଣ କର ।
ଛନଛନ ତାର ମତି ଚାହୁଁଅଛି ଚଉକତି
ପାଶେ ତା ନାହିଁ ଯୁବତୀ ହୋଇଛି ଦୂର ହେ ।"

ସେହିପରି ହାଡ଼ି, ଧୋବା, କେଳା, ପତ୍ରସଉରା, ଭାଲୁନାଟୁଆ, ଶବରଶବରୁଣୀ, କେଳାକେଳୁଣୀ ପ୍ରଭୃତି ପ୍ର‌ତ୍ୟେକ ଚରିତ୍ରଙ୍କ ମୁହଁରେ ପ୍ରବେଶ ଗୀତ ଦିଆଯାଇଥାଏ । ଦଣ୍ଡନାଟ ଶେଷରେ ବାକ୍ୟ ପରି ମଙ୍ଗଳଗୀତି ଗାନ କରିବାକୁ ଚିତ୍ରିତ ଧନୁଧରି ଆସେ ବୀଣାକାର । ତା ମୁହଁରେ ମଧ୍ୟ ପ୍ରବେଶ ଗୀତ –

"ପ୍ରଭାତ ନୀଳ ହୋଇଲା

ଷୋଳ ସୁଆଙ୍ଗରେ ବୀଣାକାର ଆସି ସଭାରେ ପ୍ରବେଶ ହେଲା।"

ସୁଆଙ୍ଗରେ ସବୁ ଚରିତ୍ର ପ୍ରବେଶ ଗୀତ ଗାଆନ୍ତି ନାହିଁ କିମ୍ବା ନାଚନ୍ତି ନାହିଁ । ନାରଦ, ଦୂତ, ଡଗର, ଦ୍ୱାରୀ, ଦାସୀ, ଜ୍ୟୋତିଷ, ଦାସୀ ମାଲୁଣୀ ପ୍ରଭୃତି ଚରିତ୍ର ନାଚି ନାଚି ଗୀତ ଗାଇ ଗାଇ ମଞ୍ଚକୁ ଆସନ୍ତି । ନାରଦ ଗାଆନ୍ତି – "ଅଇଲୁ ନାରଦ ମୁନି, କଳିଧୋକଡ଼ିକୁ କାଖରେ ଘେନି", ଦ୍ୱାରୀ ଗାଏ – "ଅଇଲା ରଂଗିଆ ଦୁଆରୀ ଲୋ, ଚଢି ମନ କରି ସୁଆରୀ ଲୋ", ମୁଦୁସୁଲୀ ବୁଢ଼ୀ ଗାଏ – "ଅଇଲା ମୁଦୁସୁଲୀ ବୁଢ଼ୀ, ଏଣିକି ଦେଖନି ଯାଉଛି ମାଡ଼ି" ସମସ୍ତ ଗୀତ ହାସ୍ୟରସାତ୍ମକ । ଉଦାହରଣ ସ୍ୱରୂପ ନାୟକ ବୁଢ଼ାର ବେଶ, ଚାଲି ଓ ନାଚ ସହିତ ତାର ଗୀତ ବଡ଼ ହାସ୍ୟକର ।

"ଅଇଲୁ ଆମ୍ଭେ ନାୟକ ବୁଢ଼ା ହୋ ଅଇଲୁ ଆମ୍ଭେ ନାୟକ ବୁଢ଼ା
ଘୋଡ଼ିଘାଡ଼ି ହୋଇଅଛୁ ଛିଣ୍ଡା ଦୋସଡ଼ା,
ଗାମୁଛାରେ ବାନ୍ଧିବାରୁ ଖାରଆ ଖଡ଼ା ।
ମୁଁ ଯାର ପକାଏ ଖଡ଼ି ତାକୁ ଖାଇଯାଏ ବାଡ଼ି

ଶୁଭ ମନାସିଲେ କୁଲା ମାଠିଆ ଲୋଡ଼ା ।"

ପ୍ରବେଶ ଗୀତଗୁଡ଼ିକରେ ଚରିତ୍ରର ବେଶ ପୋଷାକ, ଦୈନନ୍ଦିନ କାର୍ଯ୍ୟ, ପାରିବାରିକ ଜୀବନର ଦୁଃଖସୁଖ, ଜୀବିକା ଅର୍ଜନର ଉପାୟ ପ୍ରଭୃତିର ବିବରଣୀ ଥାଏ। ଏଥିରୁ ପ୍ରତ୍ୟେକର ଜୀବନଯାତ୍ରା ସଂପର୍କରେ ଧାରଣା ସୃଷ୍ଟି ହୁଏ । ଗୀତଗୁଡ଼ିକର ଶୈଳୀ ସର୍ବତ୍ର ସମାନ ହେଲେ ମଧ୍ୟ ଭିନ ଭିନ ଲେଖକଙ୍କର ଗୀତ ରଚନାରେ ଭିନ୍ନତା ଦେଖାଯାଏ ।

ମଞ୍ଚ ସହିତ ଦର୍ଶକମଣ୍ଡଳୀର ସଂଯୋଗ ସ୍ଥାପନ ପାଇଁ ବିଭିନ୍ନ ଲୋକନାଟକରେ ସଂଯୋଜକ ଚରିତ୍ରର ଉପଯୋଗ କରାଯାଇଥାଏ ଦଣ୍ଡନାଟର ମଉସା, ଭଲଲୋକିଆ, ଭାରତଲୀଳାର ଦ୍ୱାରୀ, ସୁଆଙ୍ଗର ଦୂତ, ଡଗର, ଦ୍ୱାରୀ, ନିୟତି, ପ୍ରହ୍ଲାଦ ନାଟର ଗାହାକ, ଦେଶିଆ ନାଟର ସନ୍ଧି, ସୂତ୍ରଧର, ବଣ୍ଡିନାଟର ବଣ୍ଡି ପ୍ରଭୃତି ସଂଯୋଜକ ଚରିତ୍ର ଭାବରେ ମଞ୍ଚକୁ ଆସିଥାନ୍ତି। ଭଲଲୋକିଆ ମଞ୍ଚରେ ପ୍ରବାଶ କରୁଥିବା ଚରିତ୍ରମାନଙ୍କର ପରିଚୟ ଦିଏ । ମଉସା ଚରିତ୍ର ଉଭୟ ମଞ୍ଚ ଚରିତ୍ର ସହ କଥାବାର୍ତ୍ତା କରେ ଏବଂ ରସିକତା ସହ କଥାବାର୍ତ୍ତା କରେ ଏବଂ ରସିକତା ସହ ସେମାନଙ୍କ ବିଷୟରେ ମନ୍ତବ୍ୟ ଦିଏ, ଯାହାକି ଦର୍ଶକମାନଙ୍କର ଉପଭୋଗ୍ୟ ହୁଏ। ଭାରତଲୀଳାରେ ଦ୍ୱାରୀ ଏକ ମୁଖ୍ୟ ଚରିତ୍ର । ମୂଳରୁ ଶେଷ ପର୍ଯ୍ୟନ୍ତ ମଞ୍ଚରେ ଉପସ୍ଥିତ ରହି ଘଟଣାର ଅଗ୍ରଗତି କରାଇବାରେ ତାର ଭୂମିକା ଗୁରୁତ୍ୱପୂର୍ଣ୍ଣ । ନାୟକ ଅର୍ଜୁନ ଓ ନାୟିକା ସୁଭଦ୍ରାଙ୍କ ମଧ୍ୟରେ ସଂଯୋଗ ସ୍ଥାପନ କରିବା ସହିତ ଘଟଣା ଓ ଚରିତ୍ର ବିଷୟରେ ରସିକତାପୂର୍ଣ୍ଣ ମନ୍ତବ୍ୟ ଦେଇଥାଏ। ଗୀତ ଗାଇ, ନୃତ୍ୟକରି, ହାସ୍ୟାତ୍ମକ କଥା କହି ଦର୍ଶକମାନଙ୍କର ମନୋରଂଜନ କରିଥାଏ । ସୁଆଙ୍ଗର ଦୂତ ଓ ଡଗରଙ୍କ ବେଶ ପୋଷାକ, ଅଂଗଭଂଗୀ ଓ କଥା କହିବାର ରୀତି ହାସ୍ୟକର । ମଞ୍ଚର ବିଭିନ୍ନ ଚରିତ୍ର ସଂପର୍କରେ ହାସ୍ୟରସାତ୍ମକ ମନ୍ତବ୍ୟ ଦେଇ ଦୁହେଁ ଦର୍ଶକଙ୍କୁ ହସାଇଥାନ୍ତି । ପ୍ରହ୍ଲାଦନାଟର ଗାହାକ (ଗାୟକ) ଚରିତ୍ର ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ପାବାଚ୍ଛାକୃତି ମଞ୍ଚ ଉପରେ ଠିଆ ହୋଇରହିଥାଏ ଏବଂ ନାଟକର ଘଟଣା ଓ ଚରିତ୍ରର ଗତି ସଂପର୍କରେ ଘୋଷଣା କରେ । ଦେଶିଆ ନାଟକର ସୂତ୍ରଧର ଓ ସନ୍ଧି ଚରିତ୍ର ଦୁଇଟି ଘଟଣା ଓ ପରିବେଶର ସୂଚନା ଦେଇଥାନ୍ତି । ନାଟକୀୟ ଘଟଣା ଓ ଚରିତ୍ର ସହିତ ଦର୍ଶକଙ୍କୁ ପରିଚିତ କରାଇବା ଏବଂ ବିଭିନ୍ନ ସମୟରେ ଚରିତ୍ରର କାର୍ଯ୍ୟକଳାପ କଓ ଭାବନା ସଂପର୍କରେ ମନ୍ତବ୍ୟ ଦେବା କାର୍ଯ୍ୟ ଏହି ଘୋଷକ ଚରିତ୍ର ମାନକ ଦ୍ୱାରା ସଂପାଦିତ ହୋଇଥାଏ । ଆନ୍ତର୍ଜାତିକ ନାଟ୍ୟଜଗତକୁ ପ୍ରଭାବିତ କରିଥିବା ମହାନ ଜର୍ମାନ ନାଟ୍ୟକାର ବେର୍ଟୋଲ୍, ବ୍ରେକ୍‌ଶଟଙ୍କ ପ୍ରବର୍ତ୍ତିତ ଏପିକ୍ ଥିଏଟରର ଘୋଷଣାକାରୀ ଚରିତ୍ର ସୃଷ୍ଟିର ବହୁ ପୂର୍ବରୁ ଓଡ଼ିଆ ଲୋକନାଟକରେ ଘୋଷକ ବା ସଂଯୋଜକ ଚରିତ୍ରର ବ୍ୟବସ୍ଥା ରହିଛି । ଏହି ସଂଯୋଜକ ଚରିତ୍ରଗୁଡ଼ିକ ଲୋକନାଟକର ନାଟ୍ୟକାହାଣୀ ସହିତ ସଂପର୍କାନ୍ୱିତ ନ ଥିଲେ ମଧ୍ୟ ଦର୍ଶକଙ୍କୁ ଘଟଣା ଓ ଚରିତ୍ର ସହିତ ପରିଚିତ କରାଇବା, ଦର୍ଶକ ସହ ସଂଯୋଗ ସ୍ଥାପନ କରିବା ଏବଂ ଜନ ବିଶେଷରେ ନୃତ୍ୟ, ଗୀତ, ହାସ୍ୟରସ ପରିବେଷଣ କରିବା ଦୃଷ୍ଟିରୁ ଗୁରୁତ୍ୱପୂର୍ଣ୍ଣ ।

ଓଡ଼ିଶାରେ ବିଭିନ୍ନ ଅଞ୍ଚଳରେ ଅଭିନୀତ ବହୁବିଧ ଲୋକନାଟ୍ୟ ବିଭିନ୍ନ ନାମରେ ପ୍ରଚଳିତ । ସେଗୁଡ଼ିକର ବିଭାଗୀକରଣ ନିମ୍ନରେ ପ୍ରଦତ୍ତ -

୧. ଲୀଳ : ରାମଲୀଳା, କୃଷ୍ଣଲୀଳା, ରାସଲୀଳା, ରାଧାପ୍ରେମଲୀଳା, ଭାଗବତ ଲୀଳା ଇତ୍ୟାଦି ।

୨. ନାଟ: ଦଣ୍ଡନାଟ, ଚଢ଼େୟା ନାଟ, ବଣ୍ଡିନାଟ, ଦଧିନାଟ ଇତ୍ୟାଦି

କ) ମୂକାଭିନୟ ମୂଳକ ନାଟ – ଛଉନାଟ, କଣ୍ଢେଇନାଟ ଇତ୍ୟାଦି

ଖ) ଶାସ୍ତ୍ରୀୟ ନାଟକରୁ ଲୋକନାଟକ - ପ୍ରହ୍ଲାଦନାଟ, ଦେଶିଆ ନାଟ ଇତ୍ୟାଦି

୩. ସୁଆଙ୍ଗ : ଲକ୍ଷ୍ମୀପୁରାଣ ସୁଆଙ୍ଗ, ସୁଭଦ୍ରା ହରଣ, ଚକ୍ରାବତୀ ହରଣ, ଉଷାବତୀ ହରଣ, ହାରାବତୀ ହରଣ, ଲୀଳାବତୀ ହରଣ ଆଦି ସୁଆଙ୍ଗ, ଗଣ୍ଡାବଧ ସୁଆଙ୍ଗ ଇତ୍ୟାଦି ।

୪. ଯାତ୍ରା :

(କ) ଶୋଭାଯାତ୍ରାମୂଳକ ଯାତ୍ରା - ସାହିଯାତ୍ରା, ଧନୁଯାତ୍ରା, ଠାକୁରାଣୀ ପର୍ବ ଯାତ୍ରା ଇତ୍ୟାଦି ।

(ଖ) ଗୀତାଭିନୟ ଯାତ୍ରା – ଗୋପାଳ ଦାସ, ଜଗନ୍ନାଥ ପାଣି, ବୈଷ୍ଣବ ପାଣି, ବାଳକୃଷ୍ଣ ମହାନ୍ତି, ରାମଚନ୍ଦ୍ର ସ୍ୱାଇଁ, ଦୟାନିଧି ସ୍ୱାଇଁ ପ୍ରମୁଖ ଯାତ୍ରା - ନାଟ୍ୟକାରଙ୍କ ଗୀତିନାଟ୍ୟ ସମୂହ ଯଥା – ଚନ୍ଦ୍ରାଣାଚାର୍ଯ୍ୟ ବଧ, ଦକ୍ଷଯଜ୍ଞ, ରଙ୍ଗସଭା, କର୍ଣ୍ଣବଧ, ସୁଶୀଳ ମାଳତୀ, ତାରକାସୁର ବଧ ଇତ୍ୟାଦି ।

୫. ପାଲା : ଲଳିତା ପାଲା, ନେଠା ପାଲା ।

୬. ଡାମ୍ଫା : ମୋଗଲ ଡାମ୍ଫା, ଚଉଡ଼ା ଡାମ୍ଫା, ଯୋଗୀ ଡାମ୍ଫା, ଲେିନନ - ମଜାବାବର ଡାମ୍ଫା

୭. ନାଟ୍ୟିକ ଧର୍ମାଚାର : ଶୀଳତଷଷ୍ଠୀ ଯାତ୍ରା, ଗୋବିନ୍ଦ ଦ୍ୱାଦଶୀ ବା ଚମ୍ପକ ଦ୍ୱାଦଶୀ ଯାତ୍ରା, ରାମାଭିଷେକ, ଋଷ୍ୟଶୃଙ୍ଗ ବରଣ, ହରିଜନ୍ମ, ଲଙ୍କାପୋଡ଼ି, ଧୂଳିଦଣ୍ଡ ଇତ୍ୟାଦି ।

୮. ଅଭିନୟାତ୍ମକ ଲୋକଗାନ ଓ ଲୋକନୃତ୍ୟ : ପାଲା, ଦାସକାଠିଆ, ଘୋଡ଼ାନାଟ, ଧୁଡୁକି ନାଟ ଇତ୍ୟାଦି ।

ଲୋକନାଟକ ସଂପର୍କରେ ଏକ ଭ୍ରାନ୍ତ ଧାରଣା ସୃଷ୍ଟି ହୋଇଯାଇଛି ଯେ ଘୋଡ଼ାନାଟ, ଧୁଡୁକି ନାଟ, ଦାସକାଠିଆ, ପାଲା ଇତ୍ୟାଦି ଲୋକନାଟକ ପର୍ଯ୍ୟାୟର । କିନ୍ତୁ, ଏଗୁଡ଼ିକ ପ୍ରକୃତରେ ସମ୍ମିଳିତ ଲୋକଗାନ ତଥା ଲୋକନୃତ୍ୟ । ନୃତ୍ୟ, ଗୀତ, ବାଦ୍ୟ ସହଯୋଗରେ କାହାଣୀବୟାନ ବା ଗାଥାଗାନ ଏଗୁଡ଼ିକ ବିଧିବଦ୍ଧ ଲୋକନାଟକ ନୁହେଁ । ଏଥିରେ କୌଣସି ନାଟ୍ୟ କାହାଣୀ ବିଭିନ୍ନ ଚରିତ୍ର ସାହାଯ୍ୟରେ ଅଭିନୀତ ହୁଏ ନାହିଁ । ପାତ୍ରପାତ୍ରୀମାନେ ନିର୍ଦ୍ଦିଷ୍ଟ ଭାବେ କୌଣସି ଭୂମିକା ନେଇ ଅଭିନୟ କରନ୍ତି ନାହିଁ, କିମ୍ବା ନିର୍ଦ୍ଦିଷ୍ଟ ସଂଳାପ ଉଚ୍ଚାରଣ କରନ୍ତି ନାହିଁ । ପାତ୍ରପାତ୍ରୀଙ୍କର ପ୍ରବେଶ ପ୍ରସ୍ଥାନ ମଧ୍ୟ ନ ଥାଏ । ଚରିତ୍ର ଅନୁରୂପ ବେଶପୋଷାକ ଓ ମୁଖରେଖ ନ ଥାଏ । ନାଟକ ବର୍ଣ୍ଣନାତ୍ମକ ନୁହେଁ, ଅଭିନୟଧର୍ମୀ । ସଂଳାପ ମାଧମରେ ହିଁ ନାଟକର ଆରମ୍ଭ, ବିକାଶ ଓ ପରିଣତି । ଲୋକ ନାଟକରେ ନାଟକର ସମସ୍ତ ଲକ୍ଷଣ ଉପସ୍ଥିତ ଥାଏ । ପାଲା ଓ ଦାସକାଠିଆରେ ଗାୟକ ଓ ପାଳିଆମାନେ ମଝିରେ ମଝିରେ ଗାଥାଗାନକୁ ସରସ କରିବାପାଇଁ ଅଭିନୟାତ୍ମକ ରୀତି ଅବଲମ୍ବନ କରିଥାନ୍ତି । ଲୋକନାଟକ ପରି ଏ ଦୁଇଟି ମନୋରଂଜନ ମାଧମ ନାଟ୍ୟିକଗୁଣ ସଂପନ୍ନ ହୋଇ ନ ଥିବାରୁ ଲୋକନାଟକ କୁହେ ।

ନାଟକର ସୃଷ୍ଟି ଧର୍ମୀୟ ଶୋଭାଯାତ୍ରାରୁ । ଧର୍ମୀୟ ଶୋଭାଯାତ୍ରାଗୁଡ଼ିକ ପ୍ରାୟତଃ ଅଭିନୟଧର୍ମୀ । ଉଦାହରଣ ସ୍ୱରୂପ କଳାହାଣ୍ଡିର ଋଷ୍ୟଶୃଙ୍ଗବରଣକୁ ନିଆଯାଉ । ସାଧାରଣତଃ ଗ୍ରୀଷ୍ମକାଳର ଶେଷ ଭାଗରେ

ବର୍ଷାର ଆବାହନ ପାଇଁ ଗ୍ରାମାଞ୍ଚଳରେ ଯଜ୍ଞାନୁଷ୍ଠାନମାନ କରାଯାଏ । ଏହି ଅନୁଷ୍ଠାନ ପୂର୍ବରୁ ମୁଖ୍ୟ ପୁରୋଧ ଋଷ୍ୟଶୃଙ୍ଗ ବେଶରେ ଗ୍ରାମଠାରୁ ଦୂରରେ ଏକ ବୃକ୍ଷମୂଳରେ ଝୋଟିଚିତା ଶୋଭିତ ପିଣ୍ଡି ଉପରେ ବସିଥାନ୍ତି । ଗାଁ ମୁଖିଆ ଦଶରଥ ହୁଅନ୍ତି। ଜଣକୁ ଜରତା ବେଶରେ ସଜାଇ ଦିଆଯାଇଥାଏ । ଗ୍ରାମବାସୀମାନେ ଅଯୋଧ୍ୟାର ପ୍ରଜା ଭାବେ ଦଶରଥଙ୍କ ସହିତ ଛତ୍ରପାଦୁକାବିହୀନ ହୋଇ ଶୋଭାଯାତ୍ରାରେ ଯାଆନ୍ତି ଏବଂ ଋଷ୍ୟଶୃଙ୍ଗଙ୍କୁ ବରଣ କରି ଯଜ୍ଞସ୍ଥଳକୁ ଆଣନ୍ତି। ଯଜ୍ଞ ଆରମ୍ଭ ହୁଏ। ଏହା ଏକ ଶୋଭାଯାତ୍ରାମୂଳକ ନାଟ୍ୟିକ ଧର୍ମାଚାର ହେଲେ ମଧ୍ୟ ବିଧିବଦ୍ଧ ନାଟକ ନୁହେଁ । ଶୀତଳଷଷ୍ଠୀ ଯାତ୍ରାରେ ଶିବପାର୍ବତୀଙ୍କ ବିବାହ ଉତ୍ସବ ଓ ଗୋବିନ୍ଦ ଦ୍ୱାଦଶୀରେ ରାଧାକୃଷ୍ଣଙ୍କ ବିବାହ ଉତ୍ସବ ଅନୁଷ୍ଠିତ ହୁଏ । ଏହା ଅବିକଳ ଆମର ସାମାଜିକ ବିବାହ ଅନୁଷ୍ଠାନ ପରି । ରାମଲୀଳାର ଅଭିନୟ ସ୍ଥଳକୁ ରାମ ଲକ୍ଷ୍ମଣ ସୀତା ଶୋଭାଯାତ୍ରାରେ ଆସନ୍ତି । ତା'ପରେ ରାମଲୀଳାର ଅଭିନୟ ଆରମ୍ଭ ହୁଏ । ରାବଣ ପୋଡ଼ି ଓ ରାମାଭିଷେକର ଶୋଭାଯାତ୍ରା ଧର୍ମାଚାରମୂଳକ ନାଟ୍ୟିକ ଅନୁଷ୍ଠାନ । ଦଣ୍ଡନାଟର ନାଟ୍ୟିକ ଶୋଭାଯାତ୍ରାର ପ୍ରଧାନ ପର୍ଯ୍ୟାୟ ଧୂଳିଦଣ୍ଡ । ଏହାକୁ ଦଣ୍ଡନାଟର ସୂଚନା ଦୃଶ୍ୟ କୁହାଯାଇପାରେ । ଭଗତୀମାନେ ଗ୍ରୀଷ୍ମ ଦ୍ୱିପ୍ରହରର ପ୍ରଚଣ୍ଡ ରୌଦ୍ର ଭିତରେ ଶୋଭାଯାତ୍ରାରେ ଗାଁଦାଣ୍ଡ ପାରିହୋଇ ପୋଖରୀ କୂଳକୁ ଆସନ୍ତି । ସେଠାରେ ଥିବା ଖୋଲା ଜାଗାରେ ଶିବଙ୍କ ଜମିଚାଷର ଅଭିନୟ କରନ୍ତି। ଏଥିରେ ହଳବୁଲା, ଧାନବୁଣା, ଧାନରୁଆ, ହିଡ଼ବନ୍ଧା, ବିଲବଛା, ଧାନକଟା, ବେଙ୍ଗଲା ପକା, ଧାନଉଡ଼ା ପ୍ରଭୃତି ଦୃଶ୍ୟମାନ ଅଭିନୟ କରାଯାଏ । କଳାହାଣ୍ଡି ଜିଲ୍ଲାର ଦଣ୍ଡନାଟରେ ଶିବ ପ୍ରଥମେ ଆସି ଅଭିନୟରେ ଜମିଚାଷ କରନ୍ତି । ଦଣ୍ଡନାଟରେ କୃଷିପର୍ବର ଅଭିନୟ ସମାଜର କୃଷିର ଗୁରୁତ୍ୱକୁ ସୂଚାଇଥାଏ ।

ସାହିଯାତ୍ରା, ଦଣ୍ଡନାଟ, ରାମଲୀଳା, କୃଷ୍ଣଲୀଳା, ସୁଆଙ୍ଗ ପ୍ରଭୃତିର ଏକ ଦୀର୍ଘ ପରଂପରା ରହିଛି । ଅନ୍ୟ ଲୋକନାଟକଗୁଡ଼ିକ ଏହାର ପରବର୍ତ୍ତୀ ସମୟର । ଧନୁଯାତ୍ରା ଅର୍ବାଚୀନ ହେଲେ ମଧ୍ୟ ଅନ୍ୟ ନାଟ୍ୟିକ ଶୋଭାଯାତ୍ରାଠାରୁ ଭିନ୍ନ। ଶ୍ରୀକୃଷ୍ଣଙ୍କ ମଥୁରାଲୀଳା ଓ କଂସବଧ ପ୍ରସଙ୍ଗଭିତ୍ତିକ ନାଟ୍ୟକାହାଣୀର ବିଭିନ୍ନ ଦୃଶ୍ୟ ଭିନ୍ନ ଭିନ୍ନ ସ୍ଥାନରେ ଅଭିନୀତ ହୋଇଥାଏ । ଏହା ବାରାଣସୀ ନିକଟସ୍ଥ ରାମପୁରର ରାମଲୀଳାର ଅଭିନୟ ପରି ପରିବର୍ତ୍ତିତ ସ୍ଥାନରେ ଅଭିନୀତ ବିସ୍ତୃତ କ୍ଷେତ୍ର ନାଟକ । କିନ୍ତୁ, କଂସରାଜ୍ୟର ନଗର ଭ୍ରମଣ, ସାଧାରଣ ଲୋକ ଓ ସରକାରୀ କର୍ମଚାରୀମାନଙ୍କୁ ଆଦେଶ ଦେବା ଏକ ସ୍ୱତନ୍ତ୍ର ପରିକଳ୍ପନା ।

ଓଡ଼ିଶାର ଶୈବଧର୍ମର ପ୍ରାଧାନ୍ୟ କାଳରୁ ଅର୍ଥାତ୍ ପ୍ରାୟ ଏକାଦଶ ଶତାବ୍ଦୀରୁ ଦଣ୍ଡନାଟ ପ୍ରଚଳିତ ଥିବାର ଅନୁମାନ କରାଯାଏ । ବିଷୟ ଉପସ୍ଥାପନ, ନାଟ୍ୟିକ ଶୈଳୀ, ସାମାଜିକ ଆଭିମୁଖ୍ୟ ଏବଂ ଧର୍ମଚେତନା ଦୃଷ୍ଟିରୁ ଏହାର ସ୍ୱାତନ୍ତ୍ର୍ୟ ରହିଛି। ସାମାଜିକ ସମଭାବ ପ୍ରଚାର କରୁଥିବା ଲୋକନାଟ୍ୟ ଭାବରେ ସମଗ୍ର ଭାରତବର୍ଷରେ ଏହାର ଆବଶ୍ୟକତା ସ୍ୱୀକାର୍ଯ୍ୟ; ଓଡ଼ିଶାର ଅଧିକାଂଶ ଲୋକନାଟ୍ୟ ଧର୍ମୀୟ ଚେତନାର ଉଦ୍‌ବୋଧନ ଲାଗି ଉଦ୍ଦିଷ୍ଟ । ଦେବଦେବୀଙ୍କ ମହିମାଗାନ ମୂଳ ଉଦ୍ଦେଶ୍ୟ ହୋଇଥିବାରୁ ଏହି ଲୋକନାଟକଗୁଡ଼ିକରେ ଚରିତ୍ର ଭାବେ ଦେବଦେବୀ କିମ୍ବା ରାଜନ୍ୟବର୍ଗ ଗୃହୀତ । ଆଉ ଯେଉଁ ଅଳ୍ପ କେତୋଟି ସାଧାରଣ ଚରିତ୍ର, ସମସ୍ତେ ରାଜ ପରିଚାରକ ଚରିତ୍ର ରୂପେ ସାଧାରଣ ଲୋକଙ୍କ ପ୍ରବେଶ ବା ସାଧାରଣ ଲୋକଙ୍କ ବାର୍ତ୍ତା କୌଣସି ଲୋକନାଟକରେ ନାହିଁ । କେବଳ ମାତ୍ର ଦଣ୍ଡନାଟରେ ଆରାଧ୍ୟ ଶିବପାର୍ବତୀଙ୍କୁ ଛାଡ଼ିଦେଲେ ଅନ୍ୟ ସମସ୍ତ ଚରିତ୍ର ସାଧାରଣବର୍ଗର । ପୁରୀ, ଗଞ୍ଜାମ, କନ୍ଧମାଳ ପ୍ରଭୃତି ଜିଲ୍ଲାରେ ଅଭିନୀତ ହେଉଥିବା ଦଣ୍ଡନାଟରେ ଏକୋଇଶଟି ଯୁଗ୍ମ ଚରିତ୍ର ବିଶିଷ୍ଟ ସୁଆଙ୍ଗ ପରିବେଷିତ ହୁଏ । ଏକୋଇଶ ହଳ ପଟେ, ଏକୋଇଶ ଲୀଳା ଏ ଶାସ୍ତ୍ର ଅଟେ ଗୋ ପରା।) ଶେଷରେ ସଂସ୍କୃତ ନାଟକର ଭରତବାକ୍ୟ ଅନୁରୂପ ମଙ୍ଗଳଗୀତି ଗାନ କରିବାକୁ ବୀଣାକାର ମଞ୍ଚରେ ଉପସ୍ଥିତ ହୁଏ। ବଲାଙ୍ଗୀର ଓ ସୋନପୁର ଅଞ୍ଚଳର ଦଣ୍ଡନାଟରେ ଷୋଳଟି ଯୁଗ୍ମ ଚରିତ୍ର ବିଶିଷ୍ଟ ସୁଆଙ୍ଗ ଅଭିନୀତ ହୁଏ । "ପ୍ରଭାତ କାଳ ହୋଇଲା, ଷୋଳ ସୁଆଙ୍ଗରେ ବୀଣାକାର ଆସି ସଭାରେ ପ୍ରବେଶ ହେଲା।" ବିଭିନ୍ନ ସୁଆଙ୍ଗର ଚରିତ୍ର ହେଉଛନ୍ତି- ଶିବପାର୍ବତୀ, ହାଡ଼ିହାଡ଼ିଆଣୀ, ଚଢ଼େୟା-ଚଢ଼େୟାଣୀ, ଶବର-ଶବରୁଣୀ, କନ୍ଧକନ୍ଧୁଣୀ, ପତ୍ରସଉରା-ପତ୍ରସଉରାଣୀ, ଗଉଡ଼-ଗଉଡୁଣୀ, ଧୋବା-ଧୋବଣୀ, ଭାଲୁନାଟୁଆ-ଭାଲୁ ନାଟୁଆଣୀ, ଯୋଗୀ-ଯୋଗୀଆଣୀ, ବାବାଜୀମାତା ଇତ୍ୟାଦି । ଏହି ଚରିତ୍ରଗୁଡ଼ିକ ମାଧ୍ୟମରେ ନିମ୍ନବର୍ଗ ସମାଜର ନିତିଦିନିଆ ଚାଲିଚଳଣି, ଜୀବିକା, ବେଶପୋଷାକ, ପାରିବାରିକ ସୁବିଧା ଅସୁବିଧା, ଦୁଃଖସୁଖ, ଦାମ୍ପତ୍ୟ କଳହ ପ୍ରଭୃତିର ଚିତ୍ର ପରିବେଷିତ ହୋଇଥାଏ । ଚରିତ୍ରଗୁଡ଼ିକ ମୁଖ୍ୟତଃ ହରିଜନ, ଆଦିବାସୀ ଓ ପଛୁଆ ବର୍ଗରୁ ଗୃହୀତ । ସମସ୍ତ ଦମ୍ପତି ଅଭାବୀ ପରିବାରର। ଅଭାବୀ ପରିବାରର ଚିତ୍ର ସେମାନଙ୍କ ଉକ୍ତିପ୍ରତ୍ୟୁକ୍ତି ଭିତରେ ଫୁଟିଉଠେ । ଯେପରି ହାଡ଼ିଆଣୀ ଚରିତ୍ର ମୁଖର ଗୀତକୁ ଉଦାହରଣ ଭାବେ ନିଆଯାଇପାରେ ।

"ମୋହରି ମରଦ ହୁଣ୍ଡା ନ କରେ ସେ ଦୁଃଖଧନ୍ଦା
ନିଶା ଖାଇ ଧନଦର୍ବ ଗଲା ସକଳ ।
ଘରେ ନ ରହଇ କ୍ଷଣେ ବୁଲୁଥାଇ ଏଣେତେଣେ
ଖାଇଲାବେଳକୁ ଆସି କରଇ ଗୋଳ ।
କହିଲେ ଗୋଡ଼ାଏ ମାରି କେ ସହିବ ଜାଳା ତାରି
ଛାତିକି ପଥର କରି କାଟଇ କାଳ ।"

ପୂର୍ବ ଭାରତୀୟ ଲୋକସାହିତ୍ୟରେ ଶିବ କୃଷିର ଦେବତା ଓ କୃଷକ ଭାବେ ଚିତ୍ରିତ । ଓଡ଼ିଶାରେ ଶିବ କୃଷିର ଦେବତା ତଥା ଅବ୍ରାହ୍ମଣମାନଙ୍କ ଦ୍ୱାରା ପୂଜିତ ଦେବତା । ଦଣ୍ଡନାଟରେ ଶିବ କେବଳ ଚାଷି ଜମିର ମାଲିକ ନୁହନ୍ତି, ନିଜେ ମଧ୍ୟ ଚାଷୀ । କଳାହାଣ୍ଡି ଜିଲ୍ଲାରେ ଶିବ ନିଜେ ମଞ୍ଚକୁ ଆସି ଚାଷ କରନ୍ତି । ସୋନପୁର ଅଞ୍ଚଳରେ ଦଣ୍ଡନାଟରେ ଶିବ ଚାଷ କରି କରି କ୍ଳାନ୍ତ ହେବାବେଳକୁ ପାର୍ବତୀ ଘୋଟଣା (ଦ୍ୱିପ୍ରହର ଖାଦ୍ୟ) ନେଇ ଆସି ପହଞ୍ଚନ୍ତି, ହିଡ଼ମୁଣ୍ଡ ଗଛମୂଳେ ଠିଆହୋଇ ଡାକନ୍ତି – "ଆସ ଆସ ବାବୁର ବୁଆ ପଖାଳ ଖାଇତ ହୋ ।" ଜଳେଶ୍ୱର ଅଞ୍ଚଳର ଲଂଗଳେଶ୍ୱର ଶିବଙ୍କ କୃଷିକର୍ମର ବିସ୍ତୃତ ବିବରଣୀ ରହିଛି । ଶିବଙ୍କୁ ପାର୍ବତୀ ଚାଷ କରିବାକୁ ପ୍ରବର୍ତ୍ତାଇ କହୁଛନ୍ତି – "ଆହେ କୃତ୍ତିବାସ କର ଚାଷବାସ ଉତ୍ତମ କର୍ମ ଗୃହୀର।" ଷଢ଼େଇକଳା ଅଞ୍ଚଳର ଦଣ୍ଡନାଟରେ ଶିବପାର୍ବତୀ କୃଷକ-କୃଷକପତ୍ନୀ ବେଶରେ ମଞ୍ଚକୁ ଆସନ୍ତି । କୃଷକ ବେଶର ଶିବଙ୍କ ମଥାରେ କିନ୍ତୁ ଅର୍ଦ୍ଧଚନ୍ଦ୍ର ରହିଥାଏ । ଶିବଙ୍କ ତ୍ରିଶୂଳ ସର୍ବତ୍ର ଲଙ୍ଗଳ ଭାବେ କୃଷିକର୍ମରେ ବ୍ୟବହୃତ । ଏଠାରେ ଭଗତୀମାନଙ୍କ ପରିବର୍ତ୍ତେ ଶିବପାର୍ବତୀ ନିଜେ ହଳ ବୁଲା, ଧାନବୁଣା, ହିଡ଼ବନ୍ଧା, ବିଲବଛା, ଧାନକଟା, ଧାନଉଡ଼ା ଆଦି କୃଷିକର୍ମ କରିଥାନ୍ତି । ଆସାମ ଓ ବଙ୍ଗଳାରେ ଦଣ୍ଡନାଟ ପରି କୌଣସି ଲୋକନାଟ୍ୟ

ନ ଥିଲେ ମଧ୍ୟ ଲୋକନୀତରେ ବର୍ଣ୍ଣିତ ଶିବଙ୍କ କୃଷିକର୍ମର ବିବରଣୀ ପ୍ରାୟ ସମାନ ।

ଦଣ୍ଡନାଟ ଏକ ଶିବ ଉପାସନାମୂଳକ ଲୋକନାଟକ । ଏଥିରେ ନିମ୍ନବର୍ଗର ଚରିତ୍ରମାନଙ୍କ ସାହାଯ୍ୟରେ ଅବହେଳିତ ସମାଜର କଥା ହିଁ କୁହାଯାଏ । ଏଥିରେ ଅଂଶଗ୍ରହଣ କରୁଥିବା ଭକ୍ତମାନେ ସମସ୍ତେ ଆଦିବାସୀ ହରିଜନଙ୍କଠାରୁ ଆରମ୍ଭ କରି ଚଷା, ଗଉଡ଼, ମାଳି, ଧୋବା, ବାରିକ, କୁମ୍ଭାର, କମାର, ବଢ଼େଇ, ଥଟାରି, ଶୁଣ୍ଢି, ତେଲି, ଗୁଡ଼ିଆ ଆଦି ପଛୁଆବର୍ଗର ଲୋକ । ଆଜିକାଲି ଅବଶ୍ୟ ବ୍ରାହ୍ମଣ ଆଦି ଉଚ୍ଚଜାତିର ଲୋକେ ଉଭୟ ଉପାସନା ଓ ନାଟ୍ୟାଭିନୟରେ ଅଂଶଗ୍ରହଣ କରୁଛନ୍ତି । କିନ୍ତୁ ଏହି ଶିବଭକ୍ତମାନଙ୍କ ମଧ୍ୟରେ କୌଣସି ଜାତିଭେଦ ନ ଥାଏ । ଭକ୍ତମାନେ ଦୋଳପୂର୍ଣ୍ଣିମାଠାରୁ ବିଷୁବ ସଂକ୍ରାନ୍ତି ପର୍ଯ୍ୟନ୍ତ ଏକୋଇଶ ଦିନ ପର୍ଯ୍ୟନ୍ତ ଶିବ ଉପାସନା କରିଥାନ୍ତି । ସେମାନେ ଏହି ସମୟରେ ମନ୍ଦିର ପରିସରରେ ଏକତ୍ର ଭୋଜନ ଓ ଶୟନ କରିଥାନ୍ତି । ଏଠାରେ ସମସ୍ତେ ଚାଷିପୁତ୍ର ବା ଶିବପୁତ୍ର । ସମସ୍ତେ ବ୍ରହ୍ମ-ଉପବୀତ ଧାରଣ କରନ୍ତି । ସଂକଳ୍ପ କରିବା ପରେ ଜାତିଭେଦ ଭୁଲି ଏକୋଇଶ ଦିନ ପର୍ଯ୍ୟନ୍ତ ସମସ୍ତେ ସମାନତା ଅନୁଭବ କରନ୍ତି। ନାଟ୍ୟାଭିନୟ ଆରମ୍ଭରେ ଶିବପାର୍ବତୀଙ୍କୁ ଦଣ୍ଡନାଟର ବିଧିବିଧାନ ବୁଝାଇ କହନ୍ତି –

"ସ୍ନାହାନ ସଂକଳ୍ପ ସାରି ଘଟ ବୁଡ଼ାଇଲେ ଗଙ୍ଗାକୁ ସ୍ମରି
ବ୍ରହ୍ମ ପଇତା ଦେଲେ ମନ୍ତୁରି ଗଉରୀ ଲୋ ।
ଋଷିପୁତ୍ରେ ବାକ୍ୟ କହି ଶୂଦ୍ର କଂଠେ ରୁଦ୍ର ପଇତା ଦେଇ ଲୋ
କିନ୍ତୁ, ମନ୍ତ୍ରରେ ସ୍ନାନ କରାଇ ଗଉରୀ ଲୋ ।"

ବ୍ରହ୍ମଗିରି ଅଞ୍ଚଳରୁ ସଂଗୃହୀତ ଏକ ଦଣ୍ଡନାଟ ଗୀତରେ ଅଛି –

"ସମ ଦୃଷ୍ଟିରେ ଚାହିଁଲେ ଜଗତ
ହୋଇପାରିବ ସେ ଶିବଙ୍କ ଭକ୍ତ ।
XXXXXXXXXXXX
ଯେଉଁ ଲୋକ ଏହି ବ୍ରତ କରିବ
ଜାତିଭେଦକୁ ସେହୁ ନ ମାନିବ ।"

ଦଣ୍ଡନାଟ ଏକ ଜାତିଗତ ବିଦ୍ୱେଷପୂର୍ଣ୍ଣ ସମାଜରେ ସାମାଜିକ ସମଭାବର ବାର୍ତ୍ତା ପ୍ରଚାର କରେ ଏବଂ କୃଷିକର୍ମ ପାଇଁ ଉତ୍ସାହିତ କରେ । ଯଥାର୍ଥରେ ଏହା ଏକ ବୈପ୍ଲବିକ ନାଟ୍ୟାନୁଷ୍ଠାନ, ଯାହାର ବିକଳ୍ପ ନାହିଁ ।

ଓଡ଼ିଶାର ଲୋକନାଟ୍ୟ ଅତ୍ୟନ୍ତ ସମୃଦ୍ଧ । ଏହା ଜନସାଧାରଣଙ୍କ ମନରେ ସାମାଜିକ ସମଭାବ ଓ ସହଯୋଗ ବୃଦ୍ଧି କରେ । ଗ୍ରାମବାସୀମାନଙ୍କ ଭିତରେ ଏକଦା ପ୍ରତିଷ୍ଠା କରିବାରେ ଏହା କାଳ କାଳ ଧରି ସହାୟକ ହୋଇଆସୁଛି ।

ଲୋକରୁଚିର ପରିବର୍ତ୍ତନ ଏବଂ ଯାନ୍ତ୍ରିକ ଗଣମାଧ୍ୟମରେ ଜନପ୍ରିୟତା ଫଳରେ ଆଜି ଲୋକ ନାଟ୍ୟାଭିନୟ ସଂକୁଚିତ ହୋଇଗଲାଣି । ଆଜିର ଆଡ଼ମ୍ବରପୂର୍ଣ୍ଣ ଉଗ୍ର ଆଧୁନିକତାଭରା ଅପେରା ବା ଯାତ୍ରା, ସିନେମା ଓ ଟିଭିର ପ୍ରଭାବ ଆମର ପାରଂପରିକ ଲୋକନାଟକକୁ ବିକୃତ ଓ ବିଲୟମୁଖୀ କରାଇବାରେ ଲାଗିଛି । ଏପରି ପରିସ୍ଥିତିରେ ଓଡ଼ିଶାର ଲୋକସଂସ୍କୃତିର ସୁରକ୍ଷା ଲାଗି ସଚେତନତା ଓ ପ୍ରୋତ୍ସାହନ ଆବଶ୍ୟକ ।